

ନେହେରୁ ବାଳ ପୁସ୍ତକାଳୟ—62

# ଇଦ୍ ପର୍ବ

ପ୍ରେମ୍‌ଚନ୍ଦ
ଚିତ୍ର
ପି. ବି. କବାଡି
ଇଂରାଜୀ ଅନୁବାଦ
ଖୁଶ୍‌ବନ୍ତ ସିଂହ
ଓଡ଼ିଆ ଅନୁବାଦ
ଉଦୟନାଥ ଷଡ଼ଙ୍ଗୀ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



1984 (ଶକାବ୍ଦ 1906)

© ପ୍ରେମ୍‌ଚନ୍ଦ, 1982

ଓଡ଼ିଆ ଅନୁବାଦ:
© ନ୍ୟାସନାଲ୍‌ ବୁକ୍‌ ଟ୍ରଷ୍ଟ, ଇଣ୍ଡିଆ, 1984

National Book Trust, India
REVISED PRICE Rs.5.00

IDGAH *(Oriya)*

Published by Director, National Book Trust, India, A-5 Green Park, New Delhi 110016 and printed at Sood Litho Press, B-1/2 Okhla Industrial Area, Phase II, New Delhi 110020



ରମ୍‌ଜାନର ପୂରା ତିରିଶ ଦିନ ପରେ ଆସିଥାଏ ଇଦ୍‌ ପର୍ବ । ସେ ଦିନର ସକାଳ କେତେ ସୁନ୍ଦର, କେତେ ଆନନ୍ଦଦାୟକ । ଗଛଲତା ଗାଢ଼ ଶାଗୁଆ ଦେଖାଯାଏ । ଧାନ କିଆରୀ ମନକୁ ପ୍ରଫୁଲ୍ଲ କରେ । ଆକାଶ ମନୋରମ ପାଟଳିମା ରଙ୍ଗ ଧାରଣ କରିଥାଏ । ସୂର୍ଯ୍ୟଙ୍କୁ ଦେଖ, ଏହା ପୂର୍ବ ଅପେକ୍ଷା ଅଧିକ ଉଜ୍ଜ୍ୱଳ, ଚିକ୍‌ଚିକ୍‌ କରୁଅଛି । ସତେ ଯେପରି ପୃଥିବୀକୁ ଶୁଭ ଇଦ୍‌ ଆଶୀର୍ବାଦ ଜଣାଉଛି । ଗାଁ ଗଣ୍ଡା ଆନନ୍ଦ ଉତ୍ତେଜନାରେ ନାଚି ଉଠୁଛି । ପ୍ରତ୍ୟେକ ଲୋକ ଇଦ୍‌ଗା ମସ୍‌ଜିଦ୍‌କୁ ଯିବାପାଇଁ ସକାଳୁ ତତ୍ପର । କେହି ଦେଖିଲେ, ତାଙ୍କ ଜାମାରୁ ବୋତାମ ଛିଡ଼ିଯାଇଛି, ସେ ତରତର ହୋଇ ଧାଇଁଗଲେ ପଡ଼ୋଶୀ ଘରକୁ, ଖଣ୍ଡେ ସୂତା, ଛୁଞ୍ଚି ଟିଏ ଆଣିବାକୁ । କାହାର ଯୋତା ଅତି ଟାଣ ହୋଇଯାଇଛି ସେ ସଙ୍ଗେସଙ୍ଗେ ଚାଲିଲେ ତେଲୀ ଘଣା ପାଖକୁ । ଟିକିଏ ତେଲିଆ ପିଡ଼ିଆ ଆଣି ଘଷିଦେଲେ ଯୋତା ନରମ ହୋଇଯିବ । ଚାଷୀମାନେ ସେମାନଙ୍କ ଗାଈଗୋରୁଙ୍କୁ ଖାଇବାକୁ ଦେବାରେ ବ୍ୟସ୍ତ । କାରଣ ଇଦ୍‌ଗାରୁ ଫେରିଲା ବେଳକୁ ହୁଏତ ବିଳମ୍ବ ହୋଇଯିବ । ମସ୍‌ଜିଦ୍‌ ଗ୍ରାମଠାରୁ ତିନି ମାଇଲ ଦୂର । ସେଠାରେ ମଧ୍ୟ ଶହଶହ ଲୋକଙ୍କୁ ଇଦ୍‌ ଶୁଭେଚ୍ଛା ଜଣାଇବାକୁ ହେବ । ସେମାନଙ୍କ ସହିତ ମନମିଳାଇ କଥାବାର୍ତ୍ତା କରିବାକୁ ପଡ଼ିବ । ଏହା ଖରାବେଳ ପୂର୍ବରୁ କେବେହେଲେ ଶେଷ ହେବ ନାହିଁ ।

ଅନ୍ୟମାନଙ୍କ ଅପେକ୍ଷା ପିଲାମାନେ ବେଶି ଉତ୍ସାହିତ । ସେମାନଙ୍କ ଭିତରୁ କେତେକ ଗୋଟିଏ ଥର ଉପବାସ କରନ୍ତି, ତାହା ମଧ୍ୟାହ୍ନ ପର୍ଯ୍ୟନ୍ତ । କେହି କେହି ତାହା ମଧ୍ୟ କରନ୍ତି ନାହିଁ । ମାତ୍ର ଇଦ୍‌ଗାକୁ ଯିବା ଉତ୍ସାହରୁ କେହି ହେଲେ ସେମାନଙ୍କୁ ବାରଣ କରନ୍ତି ନାହିଁ । ଉପବାସଟା ହେଉଛି ବେଶି ବୟସର ଲୋକଙ୍କ ପାଇଁ । ପିଲା-

ମାନଙ୍କ ପାଇଁ ଏହା କେବଳ ଇଦ୍ । ସେମାନେ ଏହି ପର୍ବଦିନକୁ ଚାହିଁ ରହିଥାଆନ୍ତି । ଏହି ବିଷୟରେ ପ୍ରାୟ ସବୁବେଳେ ନିଜ ଭିତରେ କଥାବାର୍ତ୍ତା ହେଉଥାଆନ୍ତି ।

ଶେଷକୁ ଆଗ୍ରହର ସହିତ ଅପେକ୍ଷା କରିଥିବା ଇଦ୍ ଆସିଥାଏ । ମୁରବୀମାନେ ତତ୍ପର ହେଉ ନାହାନ୍ତି ଦେଖି ସେମାନେ ଅଧୈର୍ଯ୍ୟ ହୋଇଉଠନ୍ତି । ଏହି ପବିତ୍ର ଦିବସରେ କଅଣ କରାଯିବ, ସେଥିପାଇଁ ସେମାନେ ବ୍ୟସ୍ତ ନୁହନ୍ତି । ସିମେଇ କ୍ଷୀରୀପାଇଁ ଯଥେଷ୍ଟ ଚିନି କି ଦୁଧ ଅଛି କି ନାହିଁ, ସେ ଚିନ୍ତା ସେମାନଙ୍କ ମନରେ ଖେଳେ ନାହିଁ ।



ମାତ୍ର ସମସ୍ତେ ଲୁହାନ୍ତି ସେହି କ୍ଷୀରୀ ଖାଇବା ପାଇଁ । ବାପା କାହିଁକି ଅଣନିଶ୍ୱାସୀ ହୋଇ ଚୌଧୁରୀ କରିମ ଅଲ୍ଲୀ ଘରକୁ ଧାଉଁଛନ୍ତି, ସେ ସମ୍ପର୍କରେ ତାଙ୍କର କୌଣସି ଧାରଣା ନାହିଁ । ସେମାନେ ଜାଣନ୍ତି ନାହିଁ ଯେ, ଯଦି ଏହି ଚୌଧୁରୀ ଅଡି ବସିବେ, ତେବେ ଇଦ୍ ଉତ୍ସବ ଦିନ କାନ୍ଦି ବାରେ ହିଁ କଟିବ ।

ପିଲାମାନଙ୍କ ପକେଟ ଦିନକୁ ଦିନ ଫୁଲିଉଠୁଛି— ହିନ୍ଦୁ ଧନ ଦେବତା କୁବେର ଭଣ୍ଡାର ପରି । ସେମାନେ ବେଳେ ବେଳେ ପକେଟରୁ ତାହା କାଢୁଅଛନ୍ତି । ଗଣୁଛନ୍ତି, ପୁଣି ଗଣୁଛନ୍ତି ଥରକୁ ଥର । ଆନନ୍ଦ ମନରେ ପକେଟରେ ରଖୁ ଅଛନ୍ତି ।



ମାହମୁଦ ଗଣେ ଏକ, ଦୁଇ,--- ଦଶ, ବାର । ତାହାର କେବଳ ବାରଗୋଟି ପଇସା ଅଛି । ମୋହସିନର ଅଛି, ଏକ, ଦୁଇ, ତିନି– ଆଠ, ନଅ,-- ପନ୍ଦର ପଇସା । ଏଇଥିରେ ସେମାନେ ବହୁତ ଜିନିଷ କିଣିବେ– ଖେଳଣା, ମିଠେଇ, କାଗଜ ବଂଶୀ ରବର ପେଣ୍ଡ୍ ଏହିପରି କେତେ କଅଣ ।

ହମିଦ୍ ସବୁଠାରୁ ସୁଖୀ । ଚାରି ବର୍ଷର ପିଲା, ପୋଷାକ ହିନିମାନିଆ, ଦେହ କ୍ଷୀଣ ଓ ଦୁର୍ଭିକ୍ଷଗ୍ରସ୍ତ । ଗତ ବର୍ଷ ବାପା ମରିଯାଇଛନ୍ତି ହଇଜାରେ । ତା'ପରେ ମା' ବି ଚାଲିଗଲେ । କେହି ଜାଣିପାରିଲେ ନାହିଁ, ତାଙ୍କର କି ରୋଗ ହୋଇଥିଲା । ଏବେ ହମିଦ୍ ଆଈ ବୁଢୀ ଅମିନାଙ୍କ କୋଳରେ ଶୁଏ । ସେଇଠାରେ ଆନନ୍ଦ ପାଏ । ବୁଢୀ ତାକୁ ବୁଝାଇ ଦେଇଛନ୍ତି, ବାପା ରୋଜଗାର କରିବାକୁ ଯାଇଛନ୍ତି, ଟଙ୍କା ବସ୍ତା ଧରି ଫେରିଆସିବେ । ମା' ଯାଇଛନ୍ତି ଆଲ୍ଲାଙ୍କ ପାଖକୁ, ତା'ପାଇଁ ସୁନ୍ଦର ଉପହାର ସବୁ ଆଣିବା ପାଇଁ । ହମିଦ୍‌କୁ ଏହି କଥା ଆନନ୍ଦ ଦେଇଥାଏ । ଆଶାରେ ବଞ୍ଚିବା ହିଁ ଅଧିକ ସୁଖକର । ପିଲାଙ୍କ ପାଇଁ ଏହି ଆଶା ବ୍ୟତୀତ ଆଉକିଛି ଆନନ୍ଦପ୍ରଦ ନାହିଁ । ପିଲାର କଳ୍ପନାରେ ସୋରିଷଟିଏ ପର୍ବତ ଆକାର ଧାରଣ କରେ ।

ହମିଦ୍ ପାଦରେ ଯୋତା ନାହିଁ । ମୁଣ୍ଡରେ ଟୋପି ମସିଆ, ଚିରା । ଟୋପିର ସୁନାଧାର ସୂତା କଳାପଡ଼ିଲାଣି । ଏହା ହେଲେ ବି ହମିଦ୍ ସୁଖୀ । ସେ ଧରି ନେଇଛି, ଯେତେବେଳେ ତା' ବାପା ଟଙ୍କା ବସ୍ତା ଧରି ଫେରିଆସିବେ, ମା' ଆଲ୍ଲାଙ୍କ ପାଖରୁ





ଉପହାର ଆଣିଦେବେ, ସେତେବେଳେ ତାର ସବୁ ଆଶା ପୂରଣ ହୋଇଯିବ । ସେତେବେଳେ ସେ ମାହମୁଦ, ମୋହସିନ, ନୁରି, ସାମୀଠାରୁ ବହୁତ ବେଶି ଖୁସି ହେବ ।

ହତଭାଗିନୀ ଅମୀନ୍ ନିଜ କୁଡିଆରେ ବସି ଲୁହ ଢାଳୁଥାନ୍ତି । ଇଦ୍ ପର୍ବ ଅଥଚ ଘରେ ମୁଠାଏ ହେଲେ ଦାନା ନାହିଁ । ଆବିଦ୍ ଯଦି ଥାଆନ୍ତା, ତେବେ ଏହି ପର୍ବ ଭିନ୍ନ ରୂପ ଧରି ନ ଥାଆନ୍ତା କି ?

ହମିଦ୍ ଆଈଙ୍କ ପାଖକୁ ଯାଇ କହିଲା, "ଆଈ, ମୋତେ ମନାକରନାହିଁ । ମୁଁ ଇଦ୍‌ଗାକୁ ଯିବି ସଙ୍ଗେସଙ୍ଗେ ଫେରିଆସିବି । ମୋତେ ବ୍ୟସ୍ତ ହୁଅନାହିଁ ।"

ଅମୀନ୍ ମନେମନେ ଦୁଃଖିତ ହେଲେ । ଅନ୍ୟ ପିଲାମାନେ ସେମାନଙ୍କ ପିତାଙ୍କ ସାଙ୍ଗରେ ଯାଉଅଛନ୍ତି । ହମିଦ୍‌ର କେବଳ ସେ ହିଁ ପିତା । ସେ କିପରି ଏକୁଟିଆ ଏତେ ଦୂରକୁ ତାକୁ ଛାଡି ଦେବ ? ପିଲାଟି ଯଦି ଲୋକ ଗହଳି ଭିତରେ ହଜିଯାଏ ? ନା, ସେ କଦାପି ତାର ଏହି ଅତି ଅଲିଅଳ କୁନି ନାତିଟିକୁ ଛାଡି ରହିପାରିବ ନାହିଁ । କିପରି ସେ ଏ ତିନିମାଇଲ ବାଟ ଚାଲି ଚାଲି ଯିବ ? ଯୋତା ନାହିଁ । କଅଁଳ ପାଦରେ ଫୋଟକା ହୋଇଯାଇ ପାରେ । ସେ ଯଦି ସାଙ୍ଗରେ ଯାଆନ୍ତା, ତେବେ ବେଳେ ବେଳେ କାଖରେ ବସାଇ ନେଇଯାଆନ୍ତା । ତା'ହେଲେ ଘରେ ରାନ୍ଧିବ କିଏ ? ପଇସା ଥିଲେ ସେ ବଜାରରୁ ଜିନିଷପତ୍ର କିଣି ଆଣନ୍ତା । ସଙ୍ଗେସଙ୍ଗେ ଇଦ୍ କ୍ଷୀରୀ ରାନ୍ଧି ଦିଅନ୍ତା ।



ଗ୍ରାମ ଭିତରେ କ୍ଷୀରୀପାଇଁ ସବୁ ଦ୍ରବ୍ୟ ସଂଗ୍ରହ କରିବାକୁ ବହୁତ ସମୟ ଲାଗିବ । ଏକମାତ୍ର ଉପାୟ ହେଉଛି, ତାକୁ ସାଙ୍ଗରେ ନେଇଯିବା ପାଇଁ କାହାକୁ ହେଲେ ଅନୁରୋଧ କରିବା ।

ଗ୍ରାମର ଲୋକମାନେ ଦଳ ବାନ୍ଧି ବାହାରିଲେ । ପିଲାମାନେ ମଧ୍ୟ ଗଲେ । ସେମାନଙ୍କ ସାଥିରେ ହମୀଦ୍ ବି ଗଲା । ପିଲାମାନେ ମୁରବୀମାନଙ୍କୁ ଟପି ଯୋରରେ ଚାଲୁଥାଆନ୍ତି । କିଛିଦୂର ଯାଇ ଗଛତଳ ଛାଇରେ ଠିଆହୋଇ ମୁରବୀମାନଙ୍କୁ ଅପେକ୍ଷା କରନ୍ତି । ଏହି ଖବନା ମୁରବୀମାନେ କାହିଁକି ଶୀଘ୍ର ଶୀଘ୍ର ପାଦ ପକାଉ ନାହାନ୍ତି ? ହମୀଦ୍ ପାଦ ତ ଅତି କ୍ଷୀପ୍ରତର ହେଉଥାଏ, ସତେ ଯେପରି ଦୁଇଟା ଡେଣା ଲାଗିଛି । ତା' ଚାଲି ଦେଖି କିଏ କିପରି ଭାବିବ ଯେ, ସେ କ୍ଲାନ୍ତ ହୋଇଯିବ ?

ସେମାନେ ସହରର ଉପକଣ୍ଠରେ ପହଞ୍ଚିଲେ । ରାସ୍ତାର ଉଭୟ ପାଖରେ ଧନୀ ଲୋକଙ୍କ କୋଠାବାଡ଼ି ସବୁ ମୁଣ୍ଡ ଟେକିଛି । ଚାରି ପାଖରେ ମୋଟା ଉଚ୍ଚ ପାଚେରୀ । ବଗିଚାରେ ଆମ୍ବ, ଲିଚୁ ପ୍ରଭୃତି ଗଛ ସବୁ ଫଳରେ ଓହଳିପଡ଼ିଛି । ଗୋଟିଏ ପିଲା ଆମ୍ବ ଗଛକୁ ଟେକା ମାରିଲା । ମାଳୀ ଦଉଡ଼ି ଆସି ସେମାନଙ୍କୁ ଗାଳି ଗୁଲଜ କଲା । ସେତେବେଳକୁ ପିଲାଏ ଅନେକ ବାଟ ଦଉଡ଼ି ଗଲେଣି । ମାଳୀକୁ ଚାହିଁ ହସିହସି ଗଡ଼ି ଯାଉଥାଆନ୍ତି । ତାକୁ କିପରି ସେମାନେ ଗଧ ବନାଇ ଦେଲେ ।

ପରେପରେ ପଡ଼ିଲା ଅତି ବଡ ବଡ କୋଠାଘର, ଅଦାଲତ କଚେରୀ, କଲେଜ, କ୍ଲବ । ବାପ୍ ରେ, ଏହି କଲେଜରେ କେତେ ପିଲା ନା ନା, ସେ ସମସ୍ତେ ପିଲା ନୁହନ୍ତି କେତେକ ବୟସ୍କ ବି ଅଛନ୍ତି । ସେମାନଙ୍କ ନାକତଳେ ଗହଳ ନିଶ । ଏହି ବଡବଡ ମଣିଷ କଅଣ ଅବା ପଢୁ ଅଛନ୍ତି ? କେତେ ବଡ ହେବାଯାଏ ସେମାନେ ଏହିପରି ପାଠ ପଢୁଥିବେ ? ଏତେ ପାଠ ସେମାନେ କଅଣ କରିବେ ? ହମୀଦ୍ ସ୍କୁଲରେ ଅବଶ୍ୟ ଦୁଇ ତିନି ଜଣ ବେଶି ବୟସର ପିଲା ଅଛନ୍ତି । ଏକାବେଳକେ ବୋକା ସେମାନେ । ଭଲରୂପେ ପଢନ୍ତି ନାହିଁ । ତେଣୁ ପ୍ରତିଦିନ ମାଡ ଖାଆନ୍ତି । ଏହି କଲେଜ ପିଲାଗୁଡାକ ବୋଧହୁଏ ଠିକ୍ ସେହିପରି ହୋଇଥିବେ । ତା' ନହେଲେ ଏତେ ବୟସ ଯାଏ ଏଠାକୁ ଆସୁଥାଆନ୍ତେ କାହିଁକି ? ଆଗରେ ଗୋଟିଏ ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ ହଲ୍ । ତା' ଭିତରେ ଯାଦୁ ଖେଳ ଚାଲିଥାଏ । ଶୁଣାଯାଏ, ଯାଦୁକର ମଲା ମଣିଷ ମୁଣ୍ଡକୁ ଏପାଖ ସେପାଖ ଚଲାଏ । ଏହିଭଳି କେତେ ଭୂତପ୍ରେତଙ୍କ ଖେଳ ଦେଖାଯାଏ ସେଠାରେ । ସେମାନେ ବାହାର ଲୋକଙ୍କୁ ତା' ଭିତରକୁ ଛାଡ଼ିଦିଅନ୍ତି ନାହିଁ । ସଂଧ୍ୟାରେ ଗୋରା ଲୋକଙ୍କ ଖେଳ ଚାଲେ । ଦାଢ଼ି ମୁଛ ଥିବା ବୟସ୍କ ଲୋକେ ଖେଳନ୍ତି । କେବଳ ସେତିକି ନୁହେଁ, ସେମାନଙ୍କ ମେମ୍ ସାହେବାମାନେ ମଧ୍ୟ ଖେଳରେ ମାତିଥାଆନ୍ତି । ଯାହାକୁ ଧରି ଏମାନେ ଖେଳୁଛନ୍ତି, ତାକୁ କୁଆଡେ ରକେଟ କୁହାଯାଏ । ମୋ ଆଈ ହାତରେ ସେଥିରୁ ଗୋଟିଏ ଦେଲେ କିପରି ଧରିବାକୁ ହେବ, ସେ ବୁଝିପାରିବ ନାହିଁ । ଯଦି ସେ ତାକୁ ଧରି ବୁଲାଇବ, ତେବେ ନିଶ୍ଚୟ ଛାନିଆ ହୋଇ ପଡ଼ିଯିବ ।

ମାହମୁଦ କହିଲା- "ଆଲ୍ଲାଙ୍କ ଶପଥ କରି କହୁଛି, ମୋ ମାଆଙ୍କ ହାତ ଥରିବ ।"

ମୋହସିନ କହିପକାଇଲା, "ମୋ ମାଆ ମହଣ ମହଣ ଗହମ ଚୂରିପାରନ୍ତି । ଏ ରକେଟ ବାଡ଼ିଟା ଧରିଲେ ତାଙ୍କ ହାତ କଦାପି ଥରିବ ନାହିଁ । ସେ ପ୍ରତିଦିନ କୂଅରୁ ଶହ ଶହ ବାଲ୍ଟି ପାଣି କାଢନ୍ତି । ଆମ ମଇଁଷିତ ଦିନକୁ ପାଞ୍ଚବାଲ୍ଟି ପାଣିପିଇଯାଆନ୍ତି । ଏହି ମେମ୍ ସାହେବା ଯଦି ଗୋଟାଏ ବାଲ୍ଟି ପାଣି ଉଠାଇବ, ତେବେ ତା ମୁହଁ ନେଳି ପଡ଼ିଯିବ ।"

ମାହମୁଦ କହିଲା, "କିନ୍ତୁ ତୋ ମାଆ ଏଭଳି ଦଉଡ଼ିପାରିବେ ନାହିଁ କି କୁଦି ପାରିବେ ନାହିଁ । ପାରିବେ କି ?"



"ସେ କଥା ସତ", ମୋହସିନ ଉତ୍ତରଦେଲା, "କେବେହେଲେ କୁଦିପାରିବେ ନାହିଁ କି ଡିଆଁ ମାରିବେ ନାହିଁ । ଦିନେ କିନ୍ତୁ ଆମ ଗାଈ ଖୁଣ୍ଟରୁ ଫିଟିଗଲା । ଚୌଧୁରୀଙ୍କ କିଆରୀରେ ଫସଲ ଚରିଯାଇଥାଆନ୍ତି । ମା' ଏତେ ଜୋରରେ ଦଉଡ଼ି ଗଲେ ଯେ, ମୋ ଆଖି ଖୋସି ହୋଇଗଲା । ହା ଆଲ୍ଲା, ମୁଁ ତ କେବେ ଏଭଳି ଧାଇଁ ପାରିବି ନାହିଁ ।"

ଆଗକୁ ଝଲୁଝଲୁ ମିଠେଇ ଦୋକାନ ପଡ଼ିଲା । ଦୋକାନ ଗୁଡ଼ିକ କି ସୁନ୍ଦର ସଜା ଯାଇଛି । ବାସନା ମହକୁଛି । ଏତେଗୁଡ଼ାଏ ମିଠାଇ ଖାଇବ କିଏ ? ଦେଖଦେଖ, ସବୁ ଦୋକାନରେ ପାହାଡ଼ ଆକାରରେ ଗଦାହୋଇଛି । କୁହାଯାଏ, ରାତିହେଲେ ଭୂତମାନେ ଆସନ୍ତି, ସବୁ କିଣି ନିଅନ୍ତି । "ବାପା କହୁଥିଲେ, ରାତି ଅଧ ହୋଇଗଲେ ସବୁ ଦୋକାନକୁ ଗୋଟାଏ ଗୋଟାଏ ଭୂତ ଆସିଯାଆନ୍ତି । ଯାହା ବଳି ଯାଇଥାଏ ଦୋକାନୀ ଓଜନ କରି ଦେଇଦିଏ । ହିସାବ କରି ଟଙ୍କା ଦେଇ ସେମାନେ ସେ ସବୁ କିଣି ନିଅନ୍ତି ।



ମୋହସିନ୍ କହିଲା।

ହମିଦ୍‌ର ମନ ଏଥିରେ ମାନିଲା ନାହିଁ, "ଭୂତମାନେ ଟଙ୍କା ପାଆନ୍ତି କେଉଁଠୁ?

"ଭୂତମାନଙ୍କର କେବେ ଟଙ୍କାର ଅଭାବ ପଡେ ନାହିଁ" ମୋହସିନ ଜବାବ ଦେଲା।

"ଯେକୌଣସି ଭଣ୍ଡାରରୁ ଇଚ୍ଛା କଲେ, ସେମାନେ ତାହା ପାଇପାରିବେ। ଆରେ ହୁ କଅଣ ଜାଣି ନାହୁଁ, କୌଣସି ପ୍ରକାର ଲୁହା ତାଲା ସେମାନଙ୍କୁ ବାଧା ଦେଇପାରିବ ନାହିଁ। ସେମାନେ ଚାହିଁଲା ମାତ୍ରକେ ସବୁ ପ୍ରକାର ହୀରା, ନୀଳା ପାଇଯିବେ। କାହା ଉପରେ ଯଦି ଖୁସିହୁଅନ୍ତି ତେବେ ତାକୁ ଟୋକେଇ ଟୋକଇହୀରାନୀଳା ଦେଇଦେବେ। ସେମାନଙ୍କୁ ଏଠାରେ ଦେଖିବତ ପାଞ୍ଚ ମିନିଟ୍ ପରେ ସେମାନେ କଲିକତାରେ ପହଞ୍ଚି ଯାଇଥିବେ।"

ହମିଦ୍ ପୁଣି ପଚାରିଲା, "ଏଇ ଭୂତଗୁଡାକ କଅଣ ଅତି ବଡ?"

"ପ୍ରତ୍ୟେକ ଭୂତ ଆକାଶ ପରି ବିରାଟ"—ଦୃଢ ସ୍ୱରରେ କହିଲା ମୋହସିନ। ତା ପାଦ ଭୂଇଁରେ ଲାଗିଥିବ, ମୁଣ୍ଡ ଆକାଶକୁ ଛୁଉଁଥିବ। ଯଦି ସେ ଚାହିଁବ, ତେବେ ଅତି ସାନ ମାଠିଆ ଭିତରେ ବି ରହିଯାଇପାରିବ।"

"ଭୂତଙ୍କୁ କିପରି ଖୁସି କରନ୍ତି ଲୋକମାନେ?" ହମିଦ୍ ପଚାରିଲା। "ଯଦି କେହି



ମୋତେ ସେ ମନ୍ତ୍ର ଶିଖାଇଦିଅନ୍ତା, ତେବେ ଅନ୍ତତଃ ଗୋଟାଏ ଭୂତକୁ ବଶ କରିନିଅନ୍ତି।

"ମୁଁ ଜାଣି ନାହିଁ"- ମୋହସିନ ଉତ୍ତରଦେଲା। "ଚୌଧୁରୀ ସାହେବ କିନ୍ତୁ ବହୁତ ଭୂତଙ୍କୁ ବଶ କରି ରଖିଛନ୍ତି। ଯଦି ଗୋଟାଏ କିଛି ଜିନିଷ ଚୋରିଯାଏ, ତେବେ ଭୂତ ତାର ସନ୍ଧାନ ପାଏ। ଏପରିକି ଚୋରକୁ ମଧ୍ୟ ଚିହ୍ନାଇଦିଏ। ଦୁନିଆଯାକରେ କେଉଁଠି କଅଣ ହେଉଛି, ଭୂତ ତାଙ୍କୁ କହିଦେଇଥାଏ।"

ହମିଦ୍ ବୁଝିପାରିଲା, ଚୌଧୁରୀ ସାହେବ କାହିଁକି ଏପରି ଧନୀ ହୋଇଛନ୍ତି ଆଉ ଲୋକମାନେ କାହିଁକି ତାଙ୍କୁ ଏତେ ଖାତିର୍ କରନ୍ତି।

କ୍ରମେ ଲୋକଭିଡ ବଢିବାକୁ ଲାଗିଲା। ନାନା ବାଟରେ ବିଭିନ୍ନ ଅଞ୍ଚଳରୁ ଇଦ୍‌ଗାକୁ ଆସୁଥିବା ଲୋକେ ସହରରେ ପୂରିଗଲେ। ପ୍ରତ୍ୟେକେ ଅନ୍ୟ ଅପେକ୍ଷା ସୁନ୍ଦର ପୋଷାକ ପିନ୍ଧି ଥାଆନ୍ତି। କେହିକେହି ଟାଙ୍ଗାରେ, କେହିବା ଏକ୍‌କା ଗାଡିରେ, କେତେକ ମଟର କାରରେ ଆସୁଥାଆନ୍ତି। ସମସ୍ତଙ୍କ ମୁହଁରେ ଉତ୍ତେଜନାର ଆଭାସ। ନିପଟ ମଫସଲରୁ ଆସିଥିବା ଆମର ନାବାଳକ ଦଳଟି ନିଜ ନିଜ ଦାରିଦ୍ର୍ୟ ପାଇଁ କେବେ ହେଲେ ବିକଳ ହେଉ ନ ଥିଲେ। ସେମାନେ ଶାନ୍ତ, ସେମାନେ ସନ୍ତୁଷ୍ଟ।

ଗାଉଁଲୀ ପିଲାମାନଙ୍କ ପାଇଁ ସହରର ସବୁ ଜିନିଷ ବିସ୍ମୟକର। ଯାହାକିଛି ଆଖି ଆଗରେ ପଡେ, ସେମାନେ ଠିଆ ହୋଇ ରହିଯାଆନ୍ତି। ମଟର ଗାଡି ସେମାନଙ୍କୁ ଅବଜ୍ଞା କରି ସଗରେ ବାଟରୁ ଘୁଞ୍ଚାଇ ଦେଉଥାଏ କିନ୍ତୁ ସେମାନଙ୍କର ସେଥିପ୍ରତି ଡର ନ ଥାଏ। ହମିଦ୍ ତ ଗୋଟିଏ ମଟର ସହିତ ଧକ୍‌କା ଖାଇଗଲା।







ବହୁ ସମୟ ପରେ ଇଦ୍‌ଗା ଆଖି ଆଗରେ ପଡ଼ିଲା । ପାଖରେ ଝଙ୍କାଳିଆ ତେନ୍ତୁଳି ଗଛ ତାର ଛାୟା ବିସ୍ତାର କରି ଠିଆ ହୋଇଅଛି । ତଳେ ସିମେଣ୍ଟର ଚିକ୍କଣ ମଣ୍ଡପ ଉପରେ ସତରଞ୍ଜି ବିଛାଯାଇଛି । ତା' ଉପରେ ଧାଡ଼ି ପରେ ଧାଡ଼ି ବାନ୍ଧି ଉପାସନାକାରୀମାନେ ବସିଅଛନ୍ତି । ମସଜିଦ୍ ଅଗଣାରୁ ଚାହିଁଲେ ଆଖିପାଇବ ନାହିଁ । ନୂଆ ଆସୁଥିବା ଲୋକେ ସେମାନଙ୍କ ପଛରେ ଧାଡ଼ି କରି ବସିଯାଉଥାଆନ୍ତି । ଏଠାରେ ଧନ ବା କ୍ଷମତାର ଗର୍ବ ନାହିଁ । କାରଣ ଇସ୍‌ଲାମ ଧର୍ମ ମତରେ ସବୁ ମନୁଷ୍ୟ ସମାନ । ଆମ ଗାଉଁଲୀ ଉପାସକମାନେ ସେମାନଙ୍କ ହାତଗୋଡ଼, ମୁହଁ ଧୋଇଦେଲେ । ଅନ୍ୟମାନଙ୍କ ପଛରେ ଧାଡ଼ି ବାନ୍ଧି ବସିପଡ଼ିଲେ । କି ସୁନ୍ଦର ମନଉଲ୍ଲାସକ ଦୃଶ୍ୟ । ଉପାସନା ବିଧିରେ କି ନିଖୁଣ ସମନ୍ୱୟ । ପ୍ରାର୍ଥନା ବେଳେ ହଜାର ହଜାର ମସ୍ତକ ଏକସମୟରେ ତଳକୁ ନଇଁଯାଉଅଛି, ତା' ପରେ ଏକସମୟରେ ସେମାନେ ସିଧା ସଳଖ ଠିଆ ହୋଇଯାଉଅଛନ୍ତି । ମୁଣ୍ଡ ନୁଆଁଉଛନ୍ତି ଏବଂ ଆଣ୍ଠୁ ଭାଙ୍ଗି ବସୁଅଛନ୍ତି । ଥରକୁ ଥର ଏହି ପଦ୍ଧତି ସେମାନେ ଅନୁସରଣ କରୁଅଛନ୍ତି । ସତେ ଅବା ହଜାର ହଜାର ଇଲେକ୍‌ଟ୍ରିକ୍ ବଲ୍‌ବ ହଠାତ୍ ଜଳିଉଠୁଛି । ପୁଣି ଲିଭିଯାଉଛି । ଥରକୁ ଥର ବାରମ୍ବାର ଏହା ଘଟୁଅଛି କି ଆଶ୍ଚର୍ଯ୍ୟଜନକ ଦୃଶ୍ୟ ।

ଉପାସନା ଶେଷ ହେଲା । ଉପାସକମାନେ ନିଜ ନିଜ ଭିତରେ କୋଳାକୋଳି ହେଲେ । ପିଲାମାନେ ଦଳଦଳ ହୋଇ ମିଠେଇ ଓ ଖେଳନା ଦୋକାନ ପାଖକୁ ଚାଲିଗଲେ—ଯେପରିକି ସୈନ୍ୟଫଉଜ ଦେଶ ଆକ୍ରମଣର ଅଭିଯାନ କରିଥାଆନ୍ତି । ଏହି ଘଟଣାରେ ମଫସଲର ବୟସ୍କ ଲୋକେ ମଧ୍ୟ ପିଲାମାନଙ୍କ ଠାରୁ କମ୍ ଆଗ୍ରହୀ ନୁହନ୍ତି । ଦେଖ୍ ଦେଖ୍ ସେଠାରେ ଝୁଲା ଖେଳ । ଗୋଟିଏ ପଇସା ଦେଇଦିଅ ଶୂନ୍ୟକୁ ଉଠିଯିବ, ପୁଣି ତଳକୁ ଖସି ଆସିବ । କି ମଜା । ହେଇଟି, ଚକ୍ରୀ ବୁଲୁଅଛି । କାଠର ହାତୀ, ଘୋଡ଼ା, ଓଟ ବନ୍ଧା ହୋଇଅଛନ୍ତି । ପଇସାଟିଏ ଦିଅ-ମଉଜରେ ପଚିଶ ଥର ଘୂରି ବୁଲିବ । ମାହମୁଦ, ମୋହସିନ, ନୁରି ଏବଂ ଅନ୍ୟ ପିଲାମାନେ ଘୋଡ଼ା, ଓଟ ପିଠିରେ ଉଠି ବସିଲେ ।

ହମିଦ୍ ଅଳ୍ପ ଦୂରରୁ ସେମାନଙ୍କୁ ନିରେଖି ଦେଖୁଥାଏ । ତା' ପାଖରେ ମାତ୍ର ତିନୋଟି ପଇସା ଅଛି, କେବଳ କେତେଥର ବୁଲିଲେ ମଥା ଘୁରିବା ସାରହେବ । ସେ ସେଥିରୁ ପଇସାଟିଏ ଖର୍ଚ୍ଚ କରିପାରିବ ନାହିଁ । ଚକା ଭଉଁରୀ ଖେଳିବାକୁ ।

ଚକ୍ରୀବୁଲା ଶେଷ ହୋଇଗଲା । ଏବେ ଖେଳନା କିଣିବାକୁ ହେବ । ରାସ୍ତାର ଗୋଟିଏ ପାଖରେ ଧାଡ଼ିଏ ବସିଛି ଖେଳନା ଦୋକାନ । ସବୁ ପ୍ରକାର କଣ୍ଢେଇ ଅଛି, ସୈନ୍ୟ ଗଉଡୁଣୀ, ରାଜା, ମନ୍ତ୍ରୀ, ପାଣିବୁହା ଲୋକ ଧୋବିଣୀ, ବାବାଜୀ । ବହୁ ପ୍ରକାରରେ ସଜା ହୋଇ ରହିଅଛି । ସେଗୁଡ଼ିକ ଠିକ୍ ଜୀଅନ୍ତା ମଣିଷ ପରି । କେବଳ କଥା କହିବା ପାଇଁ ଜିଭ ଦରକାର । ମାହମୁଦ ଖାକୀ ଜାମା ପ୍ୟାଣ୍ଟ ପିନ୍ଧା ଗୋଟିଏ କନ୍‌ଷ୍ଟେବଲ୍ କିଣିଲା । ମୁଣ୍ଡରେ ନାଲି ପଗଡ଼ି, କାନ୍ଧରେ ବନ୍ଧୁକ । ଜଣାଯାଉଥିଲା, ସେ ଯେପରି ପଡ଼ିଆରେ

ମାଡ଼' କରି ଖେଳିଛି । ମୋହସିନ୍ କିଣିଲା ଗୋଟିଏ ପାଣିବୁହା ଲୋକ । ପିଠିରେ ଭାରୀ ବ୍ୟାଗ୍ ଧରି ସେ ଯେପରି ନଇଁ ପଡ଼ିଛି । ଗୋଟିଏ ହାତରେ ପାଣି-ବ୍ୟାଗର ମୁହଁ ଧରିଅଛି । ବେଶ୍ ହସ ଖୁସି ମୁହଁ । ବୋଧହୁଏ ସେ ଗୋଟାଏ କିଛି ଗୀତ ଗାଉଛି । ଜଣାଯାଉଛି, ବ୍ୟାଗରୁ ପାଣି ଉଚ୍ଛୁଳି ପଡ଼ିଗଲାପରି । ନୁରି ଗୋଟିଏ ଓକିଲକୁ ପସନ୍ଦ କଲା । ସେ ଯେ ବଡ଼ ପାଠୁଆ, ଗୋଟିଏ ବୁଦ୍ଧିଆ ଲୋକ ଏହା ତା' ମୁହଁଭଙ୍ଗୀରୁ ଜଣା-ଯାଉଥିଲା । ଲମ୍ବା କଳା ଗାଉନ, ଧଳା କୋଟ ପକେଟରେ ରହିଥିବା ଘଣ୍ଟାର ସୁନା ଚେନ୍ ଛାତିରେ । ମୋଟା-ସୋଟା ଦେହ । ହାତରେ ବଡ଼ ବଡ଼



ଆଇନ ବହି । ସତେ ଅବା କୌଣସି କଚେରୀରେ ଜବାବ ସୁଆଲ କରି ଫେରି ଆସୁଛି ।

ଏହି କଣ୍ଢେଇ ଗୋଟିକୁ ଦୁଇପଇସା ଲେଖାଏଁ । ହମିଦ୍‌ର ତ ସର୍ବମୋଟ ତିନୋଟି ପଇସା । ସେ କିପରି ଏଭଳି ମୂଲ୍ୟବାନ୍ ଖେଳନା କିଣିବ ? ଯଦି କଣ୍ଢେଇଟି ହାତରୁ ଖସି ପଡ଼ିବ, ତେବେ ଖର୍ଣ୍ଣ ଚୂନା ହୋଇଯିବ । ବୁନ୍ଦାଏ ପାଣି ତା' ଉପରେ ପଡ଼ିଗଲେ ରଙ୍ଗ ଛାଡ଼ିଯିବ । ସେ ଏଭଳି କଣ୍ଢେଇ ନେଇ କରିବ କଅଣ ? ସେଗୁଡ଼ାକ ତାର କିଛି କାମରେ ଲାଗିବ ନାହିଁ ।

ମୋହସିନ କହିଲା, "ମୋ ପାଣିବୁହାଳୀ ନିତିଦିନ ସକାଳେ ସଞ୍ଜରେ ପାଣି ଭିର୍ଣ୍ଣବ ।"

ମାହମୁଦର ଗର୍ବ, "ମୋ କନଷ୍ଟେବଲ୍ ଘର ଜଗିବ । ଯଦି ଗୋଟାଏ ଚୋର ଆସିବ, ତେବେ ସେ ତା' ବନ୍ଧୁକରେ ଗୁଳି କରିଦେବ ।"





ନୁରି ଛାତି ଫୁଲାଇ କହିଲା, "ମୋ ଓକିଲ ମୋ ପାଇଁ କଚେରୀରେ ଲଢ଼ିବ ।"

ସାମିର କଥା ମୋ ଧୋବଣୀ ପ୍ରତିଦିନ ମୋର ଯେତେ ଲୁଗା ଜାମା, ସବୁ ସଫା କରିଦେବ ।

ହମିଦ୍ ହସରେ ଏ କଥାଗୁଡ଼ାକ ଉଡ଼ାଇଦେଲା । ଏ ସବୁ ମାଟିରେ ତିଆରି । ଥରେ ତଳେ ପଡ଼ିଗଲେ ଖଣ୍ଡ ଖଣ୍ଡ ହୋଇଯିବ କିନ୍ତୁ ତା' ଆଖି ଦୁଇଟା ସେ ସବୁ କଣ୍ଢେଇ ଉପରେ ଲାଗି ରହିଲା । ମନ ହେଲା, ମୁହୂର୍ତ୍ତକ ପାଇଁ ସେଗୁଡ଼ିକୁ ଟିକିଏ ହାତରେ ଧରନ୍ତା କି ? ମନ ନଥିଲେ ମଧ୍ୟ କଣ୍ଢେଇ ଥରେ ଧରିବାକୁ ହାତଟା ଲମ୍ବି-ଗଲା । ମାତ୍ର ପିଲାମାନେ ଦେବାକୁ ଚାହିଁଲେ ନାହିଁ । ବିଶେଷତଃ ସେଗୁଡ଼ିକ ନୂଆ

କିଣିଛନ୍ତି – ବିଚରା ହମୀଦ୍ କଣ୍ଢେଇଗୁଡ଼ିକୁ ଥରେ ହେଲେ ଛୁଇଁପାରିଲା ନାହିଁ ।

ଖେଳନା ଦୋକାନ ପରେ ମିଠେଇ ପସରା । କେହି କିଣିଲା ଖସା ମୁଆଁ । ଅନ୍ୟମାନେ ଗୋଲାପଜାମୁ ବା ହାଲୁଆ । ସେମାନେ ତାକୁ ପାଟିରେ ପୂରାଇ ଓଠ ଚାଟିବାରେ ଲାଗିଲେ । କେବଳ ହମୀଦ୍ ସେ ଆନନ୍ଦରୁ ବଞ୍ଚିତ । ହତଭାଗ୍ୟର ତ ତିନୋଟି ପଇସା ଅଛି । ସେ କାହିଁକି ଖାଇବାକୁ କିଛି କିଣିଲା ନାହିଁ ? କେବଳ ଲୋଭିଲା ଆଖିରେ ସାଙ୍ଗମାନଙ୍କୁ ଚାହିଁ ରହିଲା ।

ମୋହସିନ ପଚାରିଲା, "ହମୀଦ୍, ଏ ଖସା ମୁଆଁ ନେବୁ ? ସୁନ୍ଦର ବାସୁଛି ।"

ହମୀଦ୍ ଭାବିଲା, ତା' ପ୍ରତି ଏହା ଗୋଟିଏ ପରିହାସ । ମୋହସିନ ମୋଟେ





ଉଦାର, ଦାତା ନୁହେଁ । ଏହା ଜାଣି ମଧ୍ୟ ସେ ମୋହସିନ ପାଖକୁ ଗଲା । ମୋହସିନ ମୁଆଁ ବନ୍ଧା କାଗଜର ଗୋଟିଏ କୋଣ ହମୀଦ୍ ଆଗକୁ ଦେଖାଇଦେଲା । ହମୀଦ୍ ହାତ ବଢ଼ାଇଲା କ୍ଷଣି ସେ ତାକୁ ପାଟିରେ ପୂରାଇଦେଲା । ମାହମୁଦ, ନୁରି, ସାମି ଖୁସିରେ ତାଳି ମାଇଲେ, ହସିହସି ଗଡ଼ିଗଲେ । ହମୀଦ୍ ଲାଜରେ ସଢ଼ିଗଲା ।

ମୋହସିନ ନିଜ ମିଠାଇ ଦେଖାଇ କହିଲା, "ଆ, ମୁଁ ତତେ ନିଶ୍ଚୟ ଦେବି । ଆଲ୍ଲାଙ୍କ ଶପଥ ନେଇ କହୁଛି, ନିଶ୍ଚୟ ଦେବି । ଏଠାକୁ ଆସ, ଏହାକୁ ନେ ।"

ହମୀଦ୍ ଉତ୍ତର ଦେଲା, "ତୋ ମିଠାଇ ତୁ ରଖ, ମୋ ପାଖରେ କଅଣ ପଇସା ନାହିଁ ?"

"ତିନିଟା ପଇସା ତ ?" ସାମି କହିଲା, "ଏଇ ତିନିଟା ପଇସାରେ କିଣିବୁ କଅଣ ?"

ମାହମୁଦ କହିଲା, "ମୋହସିନ ଗୋଟାଏ ପାଜି । ହମୀଦ୍ ମୋ ପାଖକୁ ଆ, ମୁଁ ତତେ ଗୋଲାପଜାମୁ ଦେବି ।"

ହମୀଦ୍ ଜବାବ ଦେଲା, "ମିଠେଇ ପାଇଁ ପାଗଳ ହେବାରେ କଅଣ ଅଛି ? ମିଠେଇ ଖାଇବା ଖରାପ–ଏହା କଅଣ ବହିରେ ପଢ଼ିନାହଁ ?"

"ମନେମନେ କହୁଥିବୁ, ମୁଁ ଯଦି ପାଆନ୍ତି, ତେବେ ଖୁସିରେ ଖାଆନ୍ତି" ମୋହସିନ ଥଟ୍ଟାକରି କହିଲା "ତୁ ପକେଟରୁ କାହିଁକି ପଇସା ଖର୍ଚ୍ଚ କରୁ ନାହୁଁ ?"

"ମୁଁ ବୁଝିପାରୁଛି, ଏହାର ଚାଲାଖପଣିଆ", ମାହମୁଦ କହିଲା, "ଆମେ ଯେତେବେଳେ ମିଠେଇ କିଣି ପକେଟରୁ ପଇସା ସାରିଦେବା, ସେତେବେଳେ ମିଠେଇ କିଣିବ ସେ ଆମକୁ ଚିଡ଼ାଇବା ପାଇଁ ।"

ମିଠେଇ ଦୋକାନ ପରେପରେ କେତେକ ଲୁହା ଦୋକାନ ପଡ଼ିଲା । ତା' ପଛକୁ ନକଲି ଅଳଙ୍କାର ଦୋକାନ । ପିଲାମାନଙ୍କ ମନ ଆକୃଷ୍ଟ କଲାଭଳି ସେଠାରେ କିଛି ନାହିଁ । ତେଣୁ ସେମାନେ ଆଗକୁ ମାଡ଼ି ଚାଲିଲେ । ହମୀଦ୍ କେବଳ ରହିଗଲା ଲୁହା ଦୋକାନରେ ଗୋଟେ ଚିମୁଟାକୁ ଚାହିଁ । ତାର ମନେ ପଡ଼ିଲା, ଆଈଙ୍କର ଚିମୁଟା ନାହିଁ । ଯେତେବେଳେ ରୁଟି ସେକନ୍ତି, ସେତେବେଳେ ଲୁହା କରେଇରେ ତାଙ୍କ ହାତ ତାତିଯାଏ । ଯଦି ସେ ଚିମୁଟାଟାଏ କିଣିନିଏ, ଆଈ ନିଶ୍ଚୟ ଭାରି ଖୁସି ହେବେ । ଚିମୁଟା-ଟିଏ ଘରେ ଥିଲେ, ତାଙ୍କ ହାତ ଆଉ ପୋଡ଼ିଯିବ ନାହିଁ । ଏହା ଘରେ ବେଶ୍ କାମରେ ଲାଗିବ । କଣ୍ଢେଇଟାରେ ଅବା କଅଣ ହୁଅନ୍ତା ? କେବଳ ପଇସା ଅପବ୍ୟୟ । କିଛି ସମୟ ସେଥିରେ ଆନନ୍ଦ ମିଳିପାରେ, କିନ୍ତୁ ତାହା ଅତି ଅଳ୍ପ କାଳ ପାଇଁ । ତା' ପରେ ସବୁ ଭୁଲିଯିବା ସାର ହେବ ।

ହମୀଦ୍‌ର ସାଙ୍ଗ ସାଥୀ ଆଗକୁ ଚାଲିଗଲେ । ଗୋଟାଏ ଦୋକାନ ପାଖରେ ଠିଆ ହୋଇ ସେମାନେ ସର୍ବତ କିଣି ପିଇଲେ । ସେମାନେ ବଡ଼ ସ୍ୱାର୍ଥପର । ଏତେଗୁଡ଼ାଏ ମିଠେଇ କିଣିଲେ; ମାତ୍ର ତାକୁ ଗୋଟିଏ ହେଲେ ଦେଲେ ନାହିଁ ବରଂ ଛିଗୁଲ୍ଲାଇଲେ । ନିଜ ନିଜ କାମ ତାହାଦ୍ୱାରା କରାଇ ନେବାକୁ ଚାହାନ୍ତି । ଏଣିକି ଯଦି କିଛି କାମ କରି-ଦେବାକୁ ବରାଦ କରିବେ, ସେ ନିଶ୍ଚୟ ଉତ୍ତର ଦେବ, ଯାଅ ଯାଅ ତୁମେ ମିଠେଇ ଖାଅ, ପାଟିକୁ ତାହା ସୁଆଦ ଲାଗିବ । ତୁମ ଦେହରେ କେବଳ ଗୁଡ଼ାଏ କାଛୁ, କୁଣ୍ଡିଆ

ହେବ । ସବୁବେଳେ ମିଠା ଖାଇବାକୁ ପାଟି ହାଇଁପାଇଁ ହେବ । ହୁଏତ ସେଥିପାଇଁ ପଇସା ଚୋରି କରିବ, ମାଡ ଖାଇବ । ଏସବୁ କଥାତ ବହିରେ ଲେଖାଅଛି । ମୋ ଚିମୁଟାରେ ଏ ସବୁ କିଛି ହେବନାହିଁ । ଆଈମା ଚିମୁଟାଟି ଦେଖିବା ସଙ୍ଗେସଙ୍ଗେ ଦଉଡ଼ି ଆସି ମୋ ହାତରୁ ନେଇଯିବେ । କହିବେ, ମୋ ନାତି ମୋ ପାଇଁ ଗୋଟାଏ ଚିମୁଟା କିଣି ଆଣିଛି । ମୋତେ କେତେ କଲ୍ୟାଣ କରିବେ । ସାଇ ପଡ଼ିଶାରେ ତାକୁ ନେଇ ଦେଖାଇବେ । ଗାଁର ସବୁ ସ୍ତ୍ରୀ ଲୋକ କହିବେ, ହମିଦ୍‌ ତା' ଆଈମା ପାଇଁ ଗୋଟାଏ ଚିମୁଟା କିଣି ଆଣିଛି । କେତେ ଭଲ ପିଲା ସେ । ଅନ୍ୟମାନଙ୍କୁ କେହି ପସନ୍ଦ କରିବେ ନାହିଁ । ସେମାନେ ଯେଉଁ କଣ୍ଢେଇ କିଣିଛନ୍ତି, ତାହା କେବଳ ସେମାନଙ୍କ ନିଜପାଇଁ । ମୋ ଚିମୁଟାଟି ଆଈମା ପାଇଁ । ସେ ଗୁରୁଜନ । ଚିମୁଟା ପାଇଲେ କେତେ ଆଶୀର୍ବାଦ କରିବେ । ଗୁରୁଜନମାନଙ୍କ ଆଶୀର୍ବାଦ ଆଲ୍ଲାଙ୍କ ଛାମୁରେ ବିଚାର ହେବ । ସଙ୍ଗେସଙ୍ଗେ ଭଲ ଫଳ ମିଳିବ । ମୋର ପଇସା ନାହିଁ—ତେଣୁ ମୋହସିନ, ମାହମୁଦ







ମତେ ଚାହିଁ ଟାପରା କରୁଛନ୍ତି । ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବି । ସେମାନେ ନିଜ ନିଜ ଖେଳନା ଧରି ଖେଳନ୍ତୁ, ମନଇଚ୍ଛା ମିଠେଇ ଖାଆନ୍ତୁ । ମୁଁ କଣ୍ଢେଇ ଧରି ଖେଳିବି ନାହିଁ । କାହାରି ଠାରୁ କୌଣସି ଥଟ୍ଟା ଟାପରା ସହିବି ନାହିଁ । ଦିନେ ନା ଦିନେ ବାପା ଫେରିଆସିବେ, ମା' ମଧ୍ୟ ଆସିବେ । ସେତେବେଳେ ଏହି ଲଫଙ୍ଗାମାନଙ୍କୁ କହିବି, ତୁମର କଣ୍ଢେଇ ଦରକାର କି ? କେତେ ପୁଞ୍ଜା ? ପ୍ରତ୍ୟେକଙ୍କୁ ମୁଁ ଟୋକେଇଏ ଲେଖାଁଏ କଣ୍ଢେଇ ଦେବି । ବନ୍ଧୁ ସାଙ୍ଗରେ କିପରି ବ୍ୟବହାର କରିବାକୁ ହୁଏ, ସେହି ଶିକ୍ଷା ସେମାନଙ୍କୁ ଦେବି । ମୁଁ ଏତେ ଛୋଟଲୋକ ନୁହେଁ ଯେ, ପଇସାଟାକର ବାଜେ ମିଠାଇ କିଣି ଅନ୍ୟମାନଙ୍କୁ ଥଟ୍ଟା କରିବି-ଆଉ ମୁଁ ଚାଟି ଖାଉଥିବି । ବୁଝ୍‌ଛି, ସେମାନେ ମୋତେ ଚାହିଁ ହସିବେ । କହିବେ, ଦେଖ ଦେଖ, ହମିଦ୍ ଗୋଟାଏ ଚିମୁଟା କିଣିଛି । ଯାହା କହିବେ କହନ୍ତୁ ।

ହମିଦ୍‌ ଦୋକାନରୁ ଚିମୁଟାଟାଏ ଉଠାଇଲା । ପଚାରିଲା, "ଏଇ ଚିମୁଟାର ଦାମ୍‌ କେତେ ?"

ଦୋକାନୀ ତା ମୁହଁକୁ ଚାହିଁଲା । ଦେଖିଲା ସାଙ୍ଗରେ କେହି ମୁରବି ଲୋକ ନାହାନ୍ତି । ଉତ୍ତର ଦେଲା-ଏହାତ ତୁମ ପାଇଁ ନୁହେ ।

"ଏହାକୁ ବିକ୍ରି କରିବ ତ, ନା ନୁହେଁ ?"

"କାହିଁକି ନ ବିକିବି ? ତେବେ ଏଠାକୁ ଆଣିଛି କେଉଁଥିପାଇଁ ?"

"ତେବେ କହୁନାହଁ ଏହାର ଦାମ୍ କେତେ ?"

"ଛ ପଇସା ପଡ଼ିବ"

ହମିଦ୍ ମନ ଦବିଗଲା । "ଠିକ୍ କେତେ ପଇସା ନେବ କହ ।"

"ଠିକ୍ ଅଛି । ପାଞ୍ଚ ପଇସା ଦିଅ-ଏହାହିଁ ପ୍ରକୃତ ମୂଲ୍ୟ । ଇଚ୍ଛାହେଲେ ନିଅ, ନହେଲେ ରଖିଦିଅ ।"

ହମିଦ୍‌ର ମନ ଭାଙ୍ଗିଗଲା । କହିଲା, "ତିନୋଟି ପଇସା ନେଇ ଏହାକୁ ଦେବ କି ?" ସେଠାରେ ଠିଆ ନହୋଇ ଆଗ ଦୋକାନକୁ ଯିବା ପାଇଁ ପାଦ ବଢ଼ାଇଲା । ଦୋକାନୀ ପାଟି କରି ଉଠିଲା । ମାତ୍ର ସେ ବିରକ୍ତ ହୋଇ ପାଟି କରୁ ନଥିଲା, ବରଂ ହମିଦ୍‌କୁ ପାଖକୁ ଡାକିଲା, ତା' ହାତକୁ ଚିମୁଟା ବଢ଼ାଇଦେଲା ତିନୋଟି ପଇସା ନେଇ । ହମିଦ୍ ତାକୁ ବନ୍ଧୁକ ଭଳି କାନ୍ଧ ଉପରକୁ ଟେକି ଧରିଲା । ଗର୍ବର ସହିତ ଛାତି ଫୁଲାଇ ବନ୍ଧୁମାନଙ୍କ ପାଖକୁ ଚାଲି ଆସିଲା ତାକୁ ଦେଖାଇବା ପାଇଁ । ଆସ, ସେମାନେ କଅଣ କଥାବାର୍ତ୍ତା ହେଉଛନ୍ତି ଶୁଣିବା ।



ମୋହସିନ୍ ହସିଉଠିଲା । କହିଲା, "ତୁ ଗୋଟାଏ ନିପଟ ବୋକା । ଏହି ଚିମୁଟାଟା କଅଣ କରିବୁ ?"

ହମିଦ୍ ଚିମୁଟାଟାକୁ ତଳକୁ ଫିଙ୍ଗିଦେଲା । ଯବାବ ଦେଲା, ଥରେ ଏପରି କଲୁ ଦେଖି ତୋ ପାଣିବୁହା ଲୋକକୁ ? ତଳେ ପକାଇ ଦେଲୁ ? ତା' ଦେହର ସବୁ ଅଂଶ ଭାଙ୍ଗି ଚୂନା ହୋଇଯିବ ।"

ମାହମୁଦ କହିଲା, "ଏହି ଚିମୁଟା କଅଣ ଗୋଟାଏ ଖେଳନା ?"

"କାହିଁକି ନୁହେଁ ?" ଯୋରରେ ଉତ୍ତର ଦେଲା ହମିଦ୍ "ଏହାକୁ ତୋ କାନ୍ଧରେ ଧର, ସେତେବେଳେ ଏହା ଗୋଟାଏ ବନ୍ଧୁକ । ହାତରେ ଧରି ବଜାଅ ବାବାଜୀମାନେ ଯେଉଁଭଳି ଗୀତଗାଇବା ବେଳେ ବଜାନ୍ତି, ସେହିପରି ବାଜିବ । ଏଥିରେ ଗୋଟାଏ ପାହାର ଦେଲେ ତମ ସମସ୍ତଙ୍କ କଣ୍ଢେଇ ଧୂଳି ହୋଇଯିବ । କିନ୍ତୁ ତୁମର



ସବୁଯାକ କଣ୍ଢେଇ ଯେତେ ଚେଷ୍ଟା କଲେବି ଏହାର କିଛି କ୍ଷତି କରିପାରିବେ ନାହିଁ । ମୋ ଚିମୁଟା ହେଉଛି ଗୋଟାଏ ସାହସୀ ବାଘ ପରି ।"

ସାମି ଗୋଟାଏ ଛୋଟବାଜା କିଣିଥିଲା । ସେ କହିଲା, "ତୋ ଚିମୁଟାକୁ ମୋ ବାଜା ସହିତ ବଦଳ କରିବା କି ? ମୋ ବାଜାର ଦାମ୍ ଆଠ ପଇସା ।"

ହମିଦ୍ ବାଜା ଆଡକୁ ଚାହିଁଲା ନାହିଁ । କହିଲା, "ମୋ ଚିମୁଟା ଇଚ୍ଛା କଲେ ତୋ ବାଜାର ପେଟ ଫୁଟାଇ ଦେବ । ସେଇଟା ଚମଡାରେ ତିଆରି । କେବଳ ଧୁକ୍ ଧୁକ୍ ଶବ୍ଦ ହେବ । ତଳେ ପାଣି ପଡିଲେ ସେ ସବୁଦିନପାଇଁ ମୂକ ହୋଇଯିବ । ମୋ ଚିମୁଟା କି ଖରା କି ବର୍ଷା । ଏପରିକି ଝଡ ତୋଫାନ ହେଲେ ମଧ୍ୟ ଇଞ୍ଚେ ସୁଦ୍ଧା ନଇଁଯିବ ନାହିଁ ।"

ଚିମୁଟାଟି ସବୁ ଦିଗରୁ ସମସ୍ତଙ୍କ ଠାରେ ବିଜୟ ଲାଭ କଲା । ଆଉ କାହାରି ପାଖରେ ପଇସା ନ ଥିଲା । ମେଳା ବଜାର ମଧ୍ୟ ବହୁତ ପଛରେ ରହିଗଲାଣି । ନଅଟା ବାଜି ଗଲାଣି, ସୂର୍ଯ୍ୟକିରଣ କ୍ରମେ ଟାଣ ହୋଇ ଆସିଲାଣି । ପ୍ରତ୍ୟେକେ ଘରକୁ ଫେରିଆସିବାକୁ ଉଚ୍ଛନ୍ନ । ଯଦି ସେମାନେ ସେମାନଙ୍କ ବାପାଙ୍କୁ କହିବେ, ତଥାପି ଚିମୁଟା ପାଇପାରିବେ ନାହିଁ । ଏଇ ହମିଦ୍‌ଟା ଗୋଟାଏ ବୋକା; ସେ ଚିମୁଟା କିଣିବାକୁ ପଇସା ସାଞ୍ଚି ରଖିଥିଲା ।

ପିଲାମାନେ ଦୁଇଟା ଦଳରେ ଭାଗ ଭାଗ ହୋଇଗଲେ । ମୋହସିନ, ମାହମୁଦ, ସାମି ଆଉ ନୁରି ଗୋଟିଏ ପାଖରେ ଏବଂ ହମିଦ୍ ଏକାକୀ ଅନ୍ୟ ପାଖରେ । ସେମାନେ ନାନା ଯୁକ୍ତି ତର୍କରେ ମାତିଗଲେ । ସାମି ଦବିଗଲା । ମୋହସିନ୍ ମାହମୁଦ, ନୁରି ହମିଦ୍‌ଠାରୁ ବୟସରେ ବଡ । ସେମାନେ ହମିଦ୍‌କୁ ଚିଡାଇବା ପାଇଁ ନାନା ଯୁକ୍ତି କରିବାକୁ ଲାଗିଲେ । ନ୍ୟାୟ ହମିଦ୍ ପଟରେ । ନୈତିକ ବଳ ମଧ୍ୟ ତା ପକ୍ଷରେ । ଅନ୍ୟ ପକ୍ଷରେ କେତୁଟା ମାଟି କଣ୍ଢେଇ । ହମିଦ୍ ହାତରେ ଚିମୁଟା ଟାଣ ଲୁହାରେ ତିଆରି । ତାହା ନଇଁବନାହିଁ ବରଂ ମାରାତ୍ମକ । ଯେବେ ଗୋଟାଏ ବାଘ ବାଟରେ ସେମାନଙ୍କୁ ଆକ୍ରମଣ କରେ, ତେବେ ପାଣିବୁହାଳୀ କୁଆଡେ ଲୁଚିଯିବ । କନଷ୍ଟେବଲ୍ ତା ମାଟି ବନ୍ଧୁକ ଫିଙ୍ଗିଦେଇ ବାଘ ପାଦତଳେ ପଡିଯିବ । ଓକିଲ ନିଜ କଳା ଗାଉନରେ ଭୟରେ ମୁହଁ ଢାଙ୍କିଦେବ । ଛାନିଆରେ ତଳେ ପଡିଯାଇ ଏଭଳି ଭାବରେ କାନ୍ଦିବ ଯେ, ସତେ ଅବା ତାର ମାଆଙ୍କ ମାଆ ମରିଯାଇଛି । ମାତ୍ର ଚିମୁଟା, ଦୁଇଫାଳର ଲୁହା ଯନ୍ତ୍ରଟି । ଭାରତର ସାହସୀ ବୀର ଚର୍ମ ଆନ ସେ । ବାଘର ନାକକୁ ଧରି ଟାଣି ଆଣିବ, ତା ଆଖି ଦୁଇଟାକୁ ଫୁଟାଇ ଦେବ ।

ମୋହସିନ ତଥାପି ଆଣ୍ଠୁ ଭାଙ୍ଗୁ ନ ଥାଏ । "କିନ୍ତୁ ଚିମୁଟା ଯାଇ ପାଣି ବାଲ୍‌ଟି ଉଠାଇ ଆଣିପାରିବ ନାହିଁ । ପାରିବ କି ?"

ହମିଦ୍ ଚିମୁଟାକୁ ଟେକିଧରି ଉତ୍ତର ଦେଲା, "ମୋ ଚିମୁଟାର ଥରେ ମାତ୍ର କଡା ଆଦେଶରେ ତୋ ପାଣିବୁହାଳୀ ପାଣି ବୋହିଆଣି ୧ କୌଣସି ଦୁଆର ମୁହଁରେ ଛିଞ୍ଚିବାକୁ ଲାଗିବ ।"

ଏହି ବ୍ୟଙ୍ଗ କଥାର ଉତ୍ତର ମୋହସିନ କିଛି ଦେଇପାରିଲା ନାହିଁ । ମାହମୁଦ ତାକୁ ସାହାଯ୍ୟ କରିବାକୁ ପାଖକୁ ଚାଲି ଆସିଲା । "ଯଦି ଆମେମାନେ କୌଣସି



ଅପରାଧରେ ଧରା ହେବା, ତେବେ ହାତକଡାରେ ବନ୍ଧାହୋଇ କଚେରୀକୁ ନିଆଯିବା । ସେତେବେଳେ ମୋ ଓକିଲର ପାଦତଳେ ପଡି ଅନୁରୋଧ କରିବା, ଆମକୁ ରକ୍ଷାକର ।"

ଏହି ଶକ୍ତିଶାଳୀ ଯୁକ୍ତିର ଉତ୍ତର କିଛି ହମିଦ୍‌କୁ ମନେ ପଡିଲାନାହିଁ । ସେ ପଚାରିଲା, "କିଏ ଆମକୁ ଗିରଫ କରିବାକୁ ଆସିବ ?"

ମାହମୁଦ କହିଲା, "ମୋ କନଷ୍ଟେବଲ । ବନ୍ଧୁକ ଦେଖାଇ ସେ ସମସ୍ତଙ୍କୁ ଧରି ଆଣିବ ।"

ହମିଦ୍ ତା' ମୁହଁକୁ ଚାହିଁଲା । ଅବଜ୍ଞା କରି କହିଲା, "ଏଇ ହତଭାଗ୍ୟ ଆସିବ ଭାରତର ଚର୍ମ ଆନକୁ ଗିରଫ କରିବା ପାଇଁ ? ଠିକ୍ ଅଛି । ଆସ, ଥରେ ପରୀକ୍ଷା କରିନେବା । ଧରିବାକୁ ଆସିବା ଦୂରେଥାଉ, ସେ ମୋ ଚିମୁଟାକୁ ଛୁଇଁବାକୁ ମଧ୍ୟ ସାହସ କରିବ ନାହିଁ ।"

ମୋହସିନ ଅନ୍ୟ କଥା ଉଠାଇଲା, "ତୋ ଚିମୁଟା ମୁହଁ ପ୍ରତିଦିନ ନିଆଁ ଚୁଲୀରେ ଦଗ୍‌ଧ ହେବ ।" ସେ ଦୃଢ ଭାବରେ ଭାବି ନେଇଥିଲା, ହମିଦ୍ ଏଥିରେ ଚୁପ୍ ହୋଇଯିବ । କିନ୍ତୁ ତାହା ହେଲାନାହିଁ । ଧୀରଭାବରେ ଅଥଚ ବିଦ୍ରୂପ ସ୍ୱରରେ ହମିଦ୍ କହିଲା, "ଯେ ବଡ ସାହସୀ, ସେ କେବଳ ଜଳନ୍ତା ନିଆଁକୁ ଡେଇଁପାରେ । ତୁମର ହତଭାଗ୍ୟ ଓକିଲ, ପୁଲିସ କନଷ୍ଟେବଲ୍, ପାଣି ବୁହାଳୀ; ଧୋବଣୀ ନିଆଁ ଦେଖି ସ୍ତ୍ରୀ ଲୋକଙ୍କ ଭଳି ଭୟରେ ଛାନିଆଁ ହୋଇ ପଳାଇଯିବେ । ମାତ୍ର ଭାରତର ଚର୍ମ ଆନ ଏହି ଚିମୁଟା ସାହସର ସହିତ ଜଳନ୍ତା ନିଆଁକୁ କୁଦାମାରି ଚାଲିଯାଇ ପାରିବ ।"

ମାହମୁଦ ଆଉଥରେ ଛିଗୁଲେଇଲା, "ଓକିଲର ବସିବା ପାଇଁ ଚଉକି ଅଛି ଏବଂ ଆଗରେ ଟେବୁଲ । ତୋ ଚିମୁଟା କେବଳ ରୋଷେଇଘରର ମାଟି ଉପରେ ପଡିରହିବ ।"

ହମିଦ୍ ସଙ୍ଗେସଙ୍ଗେ ଉପଯୁକ୍ତ ଉତ୍ତର ଠିକ୍ କରିପାରିଲା ନାହିଁ । ଯାହା ମନକୁ ଆସିଲା କହିପକାଇଲା, "ଚିମୁଟା ଖାଲି ରୋଷାଇଘରେ ପଡିରହିବ ନାହିଁ । ଯେତେବେଳେ ତୋ ଓକିଲ ଚଉକିରେ ବସିଥିବ ମୋ ଚିମୁଟା ଯାଇ ତାକୁ ତଳେ ପକାଇ ଦେବ ।"

ଏ ଯୁକ୍ତିର ଅବଶ୍ୟ କିଛି ଅର୍ଥ ନାହିଁ । ତଥାପି ତିନିଜଣଯାକ ବୀର ଭାଙ୍ଗି ପଡିଲେ । ସତେ ଯେପରି ଗୋଟାଏ ବିଜୟୀ ଘୁଡି ଶୂନ୍ୟରେ ତିନିଟା ଘୁଡି କାଟି ତଳେ ପକାଇଦେଲା ସାମାନ୍ୟ ଖଣ୍ଡେ ଛିଣ୍ଡା କାଗଜ ମାତ୍ର ।

ହମିଦ୍ ବିଜୟ ଲାଭ କଲା । ତାର ଚିମୁଟା ଚର୍ମ ଅନ ଭାରତର । ମୋହସିନ, ମାହମୁଦ, ନୁରି, ସାମି କିମ୍ବା ଦଳର ଆଉ କେହି କଥାଟାକୁ ଅସ୍ୱୀକାର କରିପାରିଲେ ନାହିଁ ।

ପରାଜିତ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ପକ୍ଷରୁ ହମିଦ୍‌କୁ ବିଜୟର ସମ୍ମାନ ମିଳିଲା । ଅନ୍ୟମାନେ ବାର ପଇସାରୁ ଷୋଳ ପଇସା ଯାଏ ଖର୍ଚ୍ଚ କରି କିଛି ହେଲେ ଦରକାରୀ ଜିନିଷ କିଣି ନାହାନ୍ତି । ହମିଦ୍‌ର ତିନି ପଇସା ମୂଲ୍ୟର ଜିନିଷ ପ୍ରତିଦିନର ଉପଯୋଗୀ । କଣ୍ଢେଇସବୁ ଯେ କୌଣସି ମୁହୂର୍ତ୍ତରେ ଭାଙ୍ଗିଯିବେ, ଏହା କେହି ଅସ୍ୱୀକାର କରି

ପାରିବ ନାହିଁ । ମାତ୍ର ହମିଦ୍‌ର ଚିମୁଟା ବର୍ଷବର୍ଷ ଧରି ରହିଥିବ ।

ପିଲାମାନଙ୍କ କଳି ଅଳ୍ପ କ୍ଷଣସ୍ଥାୟୀ । ସେମାନେ ନିଜ ନିଜ ଭିତରେ ଶାନ୍ତି ସ୍ଥାପନ କଲେ । ମୋହସିନ କହିଲା, "ତୋ ଚିମୁଟା ଟିକିଏ ମୋ ହାତକୁ ଦେଲୁ, ବଦଳରେ ମୋ ପାଣିବୁହାଳୀକୁ କିଛି ସମୟ ଧର ।"

ମାହମୁଦ ଓ ନୁରି ଉଭୟେ ସେହିଭଳି ପ୍ରସ୍ତାବ ଦେଲେ । ହମିଦ୍‌ର ଏଥିରେ ଅମତ ହେବାର କିଛି ନଥିଲା । ଚିମୁଟା ଜଣକ ହାତରୁ ଅନ୍ୟଜଣକ ହାତକୁ ଗଲା । ବଦଳରେ ହମିଦ୍ ସବୁ କଣ୍ଢେଇକୁ ଥରେ ଥରେ ଧରିଲା । କେଡେ ସୁନ୍ଦର !

ହାରିଯାଇଥିବା ବନ୍ଧୁମାନଙ୍କ ଆଖିରୁ ଲୁହ ଝରି ଆସୁଥିଲା, ହମିଦ୍‌ର ଆଶ୍ୱାସନା ସୂଚକ ସ୍ୱର, "ସତ କହୁଛି, ମୁଁ କେବଳ ତୁମକୁ ଚିଡାଉଥିଲି । ଲୁହାତିଆରି ଏହି ଚିମୁଟାଟା ତୁମ ଖେଳନା ସହିତ କେଉଁ ଗୁଣରେ ଅବା ସରି ?" କେହି କେହି କହି-





ପାରନ୍ତି, ହମିଦ୍‌ର ଏହା ମୁହଁରଖା କଥା । ମାତ୍ର ମୋହସିନ ଦଳ ଏଥିରେ ସାନ୍ତ୍ୱନା ପାଇଲେ ନାହିଁ । ସେଦିନ ଚିମୁଟାହିଁ ବିଜୟ ଲାଭ କଲା । ଅନ୍ୟମାନଙ୍କ ମନରୁ ପରାଜୟ ଦୁଃଖ କଟିଲାନାହିଁ ।

ମୋହସିନ କହିଲା, "ଏହି କଣ୍ଢେଇ ପାଇଁ କେହିହେଲେ ଆମେ ସୁଖ ପାଇବୁନାହିଁ ।" ମାହମୁଦ ଯୋଗକଲା, "ସୁଖ ପାଇବେ ବୋଲି କହୁଛୁ ? ବରଂ ଗାଳିମାଡ ଦେବେ । ମୋ ମା' ତ ନିଶ୍ଚୟ କହିବେ, ଯାହାରେ କଅଣ ତୁ ଖାଲି ଏ ମାଟି କୁଣ୍ଢେଇଟା ପାଇଲୁ ?"

ହମିଦ୍ ମନରେ ସାନ୍ତ୍ୱନା, ଆଇମା ଚିମୁଟା ଦେଖି ଯେତେ ଖୁସି ହେବେ, କାହାରି ମା' କୁଣ୍ଢେଇ ଦେଖି ସେତେ ଖୁସି ହେବେ ନାହିଁ । ତା ପାଖରେ ସର୍ବମୋଟ ତିନୋଟି ପଇସା ଥିଲା । ତାହା ଯେପରି ସେ ଖର୍ଚ୍ଚ କରିଛି, ସେଥିପାଇଁ ମନରେ ଟିକିଏହେଲେ ଦୁଃଖ ନାହିଁ । ଏବେ ତା ଚିମୁଟା ଖରତର ଖର୍ମିଆନ, ଖେଳନାର ସମ୍ରାଟ ।

ଦିନ ଏଗାରଟା ବେଳକୁ ଗ୍ରାମଟି ପୁଣି ହସି ଉଠିଲା । ଯେଉଁମାନେ ଯାତ୍ରାକୁ ଯାଇଥିଲେ, ସମସ୍ତେ ଫେରି ଆସିଛନ୍ତି । ମୋହସିନର ସାନ ଭଉଣୀ ଦଉଡି ଆସିଲା । ତା ହାତରୁ ପାଣିବୁହାଳୀ କଣ୍ଢେଇଟି ନେଇଗଲା । ଖୁସିରେ ନାଚିଉଠୁଥିଲା, ପାଣିବୁହାଳୀ ତା ହାତରୁ ଖସି ତଳେ ପଡିଗଲା । ସଙ୍ଗେସଙ୍ଗେ ସ୍ୱର୍ଗପ୍ରାପ୍ତି । ଭାଇ ଭଉଣୀ ଦୁହେଁ ମରାମରି ହେଲେ, ଉଭୟେ କାନ୍ଦିବାକୁ ଲାଗିଲେ । ମା' ଏହି କାଣ୍ଡ ଦେଖି ପାଟି ଶୁଣି ରାଗି ଗଲେ, ଉଭୟଙ୍କ ଗାଲରେ ଦୁଇ ଦୁଇ ଚାପୁଡା ବସାଇଦେଲେ ।

ନୁରିର ଓକିଲ ତାର ସମ୍ମାନ ବଜାୟ ରଖିବାକୁ ଯାଇ ଲୋପ ପାଇଗଲା । ଓକିଲ କେବେ ଭୂଇଁରେ ବସି ନପାରେ । ତାର ମର୍ଯ୍ୟାଦା ରକ୍ଷାକରିବାକୁ ହେବ । କାନ୍ଥରେ ଦୁଇଟା କଣ୍ଟା ବାଡିଆଗଲା । ଗୋଟାଏ ପଟା ତା ଉପରେ ପଡିଲା । ପଟା ଉପରେ କାଗଜର ଗାଲିଚା । ମାନ୍ୟବର ଓକିଲ ରାଜା ଭଳି ସିଂହାସନରେ ବସିଲେ । ନୁରି ପାଖରେ ଠିଆହୋଇ ପଙ୍ଖା କଲା । ସେ ଜାଣେ, ଥଣ୍ଡା ପାଇଁ କଚେରୀରେ ବେଣାଚେର ପରଦା ଲାଗିଥାଏ, ମୁଣ୍ଡ ଉପରେ ବିଜୁଳି ପଙ୍ଖା ବୁଲୁଥାଏ । ତା ପକ୍ଷରେ ଯେତିକି ସମ୍ଭବ, ସେ ତାହାହିଁ କଲା । ହାତରେ ଗୋଟିଏ ବିଞ୍ଚଣା ଧରି ହଲାଇଲା । ନହେଲେ ତା ଓକିଲର ମଥା ଜବାବ ସୁଆଲ କଲାବେଳେ ଗରମରେ ବିଗିଡିଯିବ ଯେ । କାଉଁଶ ପାଡିଆ ତିଆରି ବିଞ୍ଚଣା ନୁରି ହଲାଉଥିଲା । କେଜାଣି କାହିଁକି, ପବନ ଯୋରରେ ହେଉ ଅବା ବିଞ୍ଚଣା ଧକ୍‌କା ଖାଇ ହେଉ କିମ୍ବା ଆଉ କୌଣସି କାରଣରୁ ମାନ୍ୟବର ଓକିଲ ତାର ଉଚ୍ଚ ସିଂହାସନରୁ ତଳେ ଖସି ପଡିଲେ । ଟିକ୍‌ଟିକ୍ କରୁଥିବା ଗାଉନ ସହ ସେ ଯେଉଁ ମାଟିରେ ତିଆରି ହୋଇଥିଲା, ସେହି ମାଟିରେ ମିଶି ଏକାକାର ହୋଇଗଲା । ଏହା ହୃଦୟ ବିଦାରକ । ଓକିଲର ମୃତଦେହ ଖତଗଦାରେ ସ୍ଥାନ ପାଇଲା ।

ମାହମୁଦର କନଷ୍ଟେବଲ ରହିଥିଲା । ତାକୁ ସଙ୍ଗେସଙ୍ଗେ ଗାଁରେ ପହରା ଦେବା କାର୍ଯ୍ୟରେ ନିଯୁକ୍ତ କରାଗଲା । କିନ୍ତୁ ନିଜର ଦୁଇ ପାଦରେ ଚାଲିଯିବାର କ୍ଷମତା ତାର ନଥିଲା । ତାକୁ ଗୋଟିଏ ପାଲିଙ୍କି ଯୋଗାଇ ଦିଆଗଲା । ଭଙ୍ଗା ଟୋକେଇରେ ନାଲି ରଙ୍ଗର ଛିଣ୍ଡା କନା ବିଛାଇ ସେଥିରେ ତାକୁ ସୁବିଧାରେ ବସାଇ ଦିଆଗଲା । ମାହମୁଦ

ଟୋକେଇ ଟେକିଧରି ଏ ପାଖ ସେ ପାଖ ବୁଲିଲା । ସାନ ଭାଇ ଦୁଇଟି ତା ପଛେ ପଛେ ଚାଲିଲେ । ପାଟି କରୁଥାଆନ୍ତି— ଯେ ନିଦରେ ଶୋଇଅଛ ସାବଧାନ ହୁଅ । ଅନ୍ଧାର ରାତି, ମାହମୁଦର ପାଦ ଖସିଗଲା । ଟୋକେଇଟା ତା ହାତରୁ ପଡିଗଲା । ବନ୍ଧୁକ ସହ କନଷ୍ଟେବଲ ଭୂଇଁ ଉପରେ । ଗୋଟାଏ ଗୋଡ ଭାଙ୍ଗିଗଲା । ମାହମୁଦ ଜଣେ ଡାକ୍ତର





କିନା । ଗୋଡଟା ଶୀଘ୍ର ଭଲ ହେବାପାଇଁ ସେ ମଲମ ଲଗାଇ ଦେଲା । ମଲମ ହେଉଛି ବର ଗଛର ଅଠା । ସେ ଅଠା ଆଣି ଲଗାଇ ଭଙ୍ଗା ଦୁଇଖଣ୍ଡ ଯୋଡା ହେଲା । ମାତ୍ର ଯେତେବେଳେ କନଷ୍ଟେବଲକୁ ଠିଆ କରାଇ ଦିଆଗଲା, ଭଙ୍ଗାପାଦ ଖସି ପଡିଲା । ଗୋଟାଏ ଗୋଡ କିଛି କାମରେ ଲାଗିବ ନାହିଁ । ସେ ଏବେ ଚାଲିପାରିବ ତ ନାହିଁ, ବସି ବି ପାରିବ ନାହିଁ । ମାହମୁଦ ଗୋଟାଏ କଟାକଟି କରୁଥିବା ଡାକ୍ତର ବନିଗଲା । ଆର ଗୋଡଟାକୁ କାଟି ପକାଇଲା, ଅନ୍ତତଃ ଟିକିଏ ସୁବିଧାରେ ବସିପାରିବ ତ ।

କନଷ୍ଟେବଲ୍ ଏବେ ଗୋଟାଏ ସାଧୁ ବନିଗଲା । ସେ କେବଳ ଗୋଟିଏ ସ୍ଥାନରେ ବସିରହି ଗାଁ ଯାକ ପହରା ଦେବ । ନହେଲେ ଦେବତାର ମୂର୍ତ୍ତିଟିଏ ଭଳି ପୂଜାପାଇବ । ମୁଣ୍ଡର ପଗଡି ଘର୍ଷି ଦିଆଗଲା । ଯେତେ ପ୍ରକାର ଇଚ୍ଛା, ତାର ଚେହେରା ସେତେପ୍ରକାର ବଦଳାଇ ଦିଅ । ଶେଷକୁ ବଟକରାରେ ଓଜନ କରିବା ଭଳି ଗୋଟିଏ ମାଟି ପିଣ୍ଡୁଳାର କାମ ଦେବ ।

ଆସ ଦେଖିବା, ଆମ ବନ୍ଧୁ ହମିଦ୍ ଭାଗ୍ୟରେ କଅଣ ଘଟିଲା ? ଆଇମା ତା ପାଟି ଶୁଣିବା ମାତ୍ରକେ ଘରୁ ବାହାରି ଆସିଲେ । ତାକୁ ଟେକିଧରି କୋଳକଲେ, ସ୍ନେହରେ ଗେଲକଲେ । ହଠାତ୍ ଦେଖିପକାଇଲେ, ତା ହାତରେ ଗୋଟାଏ ଚିମୁଟା

"ତୁ କେଉଁଠୁ ଏ ଚିମୁଟା ଆଣିଲୁ ?"

"ଯାତ୍ରାରୁ ତାକୁ କିଣି ଆଣିଛି ।"

"କେତେ ପଇସା ଏହାପାଇଁ ଦେଲୁ ?"

"ତିନି ପଇସା"

ଆଇମା ଅମିନା ଦୁଃଖରେ ଭାଙ୍ଗି ପଡିଲେ । "ତୁ ଗୋଟାଏ ନିପଟ ଗଧ । ଆସି ଖରାବେଳ ହେଲାଣି କିଛିହେଲେ ଖାଇନାହୁଁ କି ପିଇ ନାହୁଁ । କିଣି ଆଣିଲୁ କଅଣନା ଚିମୁଟାଟାଏ । ମେଳାରେ କଅଣ ଏହାଠୁ ଭଲ ଦ୍ରବ୍ୟ ଆଉ କିଛି ପାଇଲୁ ନାହିଁ ?"

ହମିଦ୍ ଆହତ କଣ୍ଠରେ ଉତ୍ତର ଦେଲା, "ଲୁହାକରେଇରେ ତୁମ ହାତ ସେଦିନ ପୋଡି ଯାଇଥିଲା । ସେଥିପାଇଁ ଏହାକୁ କିଣି ଆଣିଲି ।"

ସଙ୍ଗେସଙ୍ଗେ ବୃଦ୍ଧାଙ୍କ ରାଗ ସ୍ନେହରେ ପରିଣତ ହୋଇଗଲା । ସେ ସ୍ନେହର ହିସାବ କରାଯାଇପାରିବ ନାହିଁ । ଏହି ସ୍ନେହ ହେଉଛି ମୂକ, ନିଦା ଆଉ କୋମଳ ମମତା ଭରା । କେତେ ନିଃସ୍ୱାର୍ଥପର ପିଲା । ଅନ୍ୟପାଇଁ କେତେ ବ୍ୟାକୁଳତା । କିପରି ଉଦାର ମନ । ଅନ୍ୟ ପିଲାଏ କଣ୍ଢେଇ, ମିଠେଇ କିଣିଲାବେଳେ ଏହା ମନ କଅଣ ନ ହୋଇ ଥିବ ? ଏ କିପରି ସେ ସବୁ ଲୋଭ ଚାପିରଖିଲା ? ଯାତ୍ରା ମଉଜରେ ମଧ୍ୟ ତା ବୁଢୀ ଆଇମା କଥା ମନରେ ଖେଳୁଥିଲା । ଆଇମା ଅମିନାଙ୍କ ଅନ୍ତର ଉଲ୍ଲସିତ ହୋଇ ଉଠିଲା ଏ ସବୁ ଭାବନାରେ ।

ଆହୁରି ଆଶ୍ଚର୍ଯ୍ୟଜନକ ଘଟଣା ଘଟିଲା । ପିଲା ହମିଦ୍‌ର ଖେଳନା ଏହି ଚିମୁଟା ତାକୁ ବୁଢା ହମିଦ୍ କରିଦେଲା । ବୃଦ୍ଧା ଆଇମା ଅମିନା ଯେପରିକି ଗୋଟିଏ ଛୋଟ ଝିଅ ଅମିନା ହୋଇ ଗଲେ । ତାଙ୍କ ଅନ୍ତର ତରଳିଗଲା । ନିଜ କାନି ତଳେ ବିଛାଇ

ସେ ଆଣ୍ଠୁ ମାଡ଼ି ବସି ପ୍ରାର୍ଥନା କଲେ, ତାଙ୍କ ନାତି ପାଇଁ ଆଲ୍ଲାଙ୍କ ଆଶୀର୍ବାଦ ଭିକ୍ଷା-କଲେ । ବଡ଼ବଡ଼ ଟୋପା ଲୁହ ତାଙ୍କ ଦୁଇ ଆଖିରୁ ଝରି ପଡ଼ିଲା । ବିଚରା ହମିଦ୍ କିପରି ଜାଣିବଯେ, ଆଈମାଙ୍କ ଅନ୍ତରରେ କେଉଁଭଳି ଝଡ଼ ବୋହୁଅଛି କି ବେଗରେ ।

